କବି ଶ୍ରୀ ବୈଷ୍ଣବ ପାଣିଙ୍କ ବିରଚିତ

# କେଙ୍କାକେଲୁଣୀ

## ସୁଆଙ୍ଗ ।



ଶ୍ରୀ ଜଗନ୍ନାଥ ସିଂହ ଓ
ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଦ୍ୱାରା

ଚତୁର୍ଥବାର ପ୍ରକାଶିତ ।



ପ୍ରାପ୍ତିସ୍ଥାନ :—
ଜଗନ୍ନାଥ କୋମ୍ପାନୀ
ପୋ: ଅ: ଚାନ୍ଦନୀଚୌକ
ନିମଚଉଡ଼ି, କଟକ ।

ମୂଲ୍ୟ ଟ ୦ /    ଏକଅଣା ମାତ୍ର ।

# କେଳାକେଳୁଣୀ ସୁଆଙ୍ଗ

---

( ୧ମ—କେଳାର ପ୍ରବେଶ ଧୂଡ଼ୁକ ବାଇ ଗୀତ )

( ଚନ୍ଦ୍ରବଦନୀ—ବୃତ୍ତେ )

ଅଜ ନାଚିବା ଧୂଡ଼ୁକ ବାଇରେ, ଅସ ଭାଇରେ । ପଦ । ଅଜନ ପରିବନ୍ଦନ, ବଡ଼ ଗରବ ସମାନ । ସଚବେ ହୋଇବା ବାଇରେ । ୧ । ଯେବେ କେଲୁଣୀ ସଙ୍ଗରେ, ବୋଲିବ ଗୀତ ରାଗରେ, କହି ତା ତା ଥେଇ ଥେଇ ରେ । ୨ । ମୋ ଦର ବଡ଼ ଭାଉଜ, ମା ଗୁଡ଼ି ବସ ମଉଜ, ଦ୍ୱାସ ଦ୍ୱସ ପାନ ଖାଇରେ । ୩ । ଡାକ ଡାକ ଗ ଲ ଥଳ, ଅଦିନ୍ନା ନାହିଁ କାହିଁକି, ବଇଷ୍ଣବ ପଦ କହି ରେ । ୪ ।



ସଭାଜନ—ଓରେ କେଳା, ତମଇ ତ ପରବ ଅଛ କହୁଛୁ, ତୋର ସାଙ୍ଗରେ କେଲୁଣୀ କାହିଁ? ନ ଡେଇବୁ କାହାକୁ? ନଡେଇବୁ ତାହାକୁ ଡାକ ତୋ କେଲୁଣୀଙ୍କୁ ।

କେଳା—ଏତେ ସାଆନ୍ତେ, ମୋ କେଳୁଣୀ ତେଣେ ବସି ଖୋସା ସାଜୁଥିଲା ଡାକିଲାକ୍ଷଣି ଧାଇଁ ଆସିବ ।

ସଭାଜନ—ଓରେ କେଳା, ତୋର କି ପିଲାପିଲି ଅଛନ୍ତି କାହା ନାମ ଧରି ଡାକିବୁ ।

କେଳା—ସାଆନ୍ତେ; ମୋର ସେଠା ଭ୍ରୁଭଙ୍ଗ ବୋଲି ଝିଅ ଅଛୁ ସୁନା ବୋଲି ପୁଅ ଅଛୁ । ତାକୁ ସୁନା ମା ବୋଲି ଡାକିଲେ ଆସିବ ।

ସଭାଜନ—କେଳା, ତୋ ପିଲା ଦୁଇଜଣଙ୍କ ଭିତରେ ବଡ଼ ଜଣେ ?

କେଳା—ସାଆନ୍ତେ, ବଡ଼ କେହ୍ନାହିଁ ଝୁଅଛ ସୁନା ମାର, ପୁଅଛ ମେର ସେ ମେତେ ଭୁରୁଙ୍ଗି ବୋଧା ଡାକେ, ମୁଁ ତ ଲୁ ସୁନାମା ଡାକେ ।

ସଭାଜନ—ତେବେ ଡାକେ ତୋ କେଲୁଣୀକ ଆମେ ନାଚ ଦେଖି ସିରପା ଦେବା ।

କେଳା—ଏଁ ସିରପା ମିଳବ ସାଆନ୍ତେ ତେବେ ଡ଼କୁଣି ଛାଲୁଚ । ଓତୋ ଭରୁଭଙ୍ଗୀ ମା ଧାଏଁ ଆଏ ଆଏ ।



କେଲୁଣୀର ଗୀତ ଗାଇ ପ୍ରବେଶ ।

( କେଣେ ଅଛୁ ଶୁଣା ତୋ ଭୃଣ୍ଡ—ବୃତ୍ତେ )

ପଳାଇଲ୍ଲ ପଚ, ଏତେ ବେଳ'ବେଳ କପାଁ ଡାକୁ ରେ କେଳା । ମାଜୁଥିଲ ବେଶ ମାଜୁଥିଲ କେଶ ଖଞ୍ଜୁଥିଲ ଦୃପସର ରେ । ପଦ । ଶେଇ ଏକା ଶେଯରେ ଖେଳ କେଲୁ ଯୁବା ବନ୍ଧୁସ ଶୁଲ, ଗେନ୍ତ ସରଗ ପ୍ରୀତି ଅନୁରାଗ ବନେ ନ ପାରଲ ବାଗ ରେ । ୧ । ମାଗଥିଲ ନାଲ ଦକ୍ଷିଣୀ-ଶାଢ଼ୀ ଖଣ୍ଡେ ନ ଦେଲୁ କିଣି । କଣା ପଡ଼ଗଲ୍ଲ ନାଗର ପଣିଆ ମିଛେ ବାଦ ଦେଲ ବର ରେ । ୨ । କେତାଲୁଲ କଲଙ୍କ ଭୁହି, ବୁଲୁ ମିଛେ ମୁହଁ ଦେଖାଇ, ହେଲ ରେ ହେଲାଟେ ସବୁ ଶେଷ ହେଲା ମଲ ଗ୍ରାଭ ଦନ ଝୁର ରେ । ୩ । ଏତେ ବଡ଼ ଦରବାରେ, ଝଙ୍କାଗୋଡା ନାହିଁ ଅଣ୍ଟାରେ; ବଇ ବେଲେ ଠେକା ବାନ୍ଧ ଦେଇ ମୁଣ୍ଡେ ମିଛେ ଭୃଣ୍ଡେ ଘଡ଼ୁ ଛୁର ରେ । ୪ ।

କେଳା—ଓ ତୋ କେଲୁଣୀ ଏତେ ମୋର ଉପରେ ରାଗୁଛୁ କାହିଁ ? ପଧାନ ସାଆନ୍ତେ ପର୍ ତୋର ନାଚ ଦେଖିବାକୁ ଡକେଇଛନ୍ତି ଖଣ୍ଡେ ଭଲ ସିରପା ଦେବାକୁ ଅଜ୍ଞା ଦେଇଛନ୍ତି; ମୁଁ ଧୁଡ଼ୁଛ ମାରେ ତୁ ଖଣ୍ଡେ ନାଚ ଦେଖା ।

କେଲୁଣୀ—ଏ ପଧାନ ସାଆନ୍ତେ, ତାଙ୍କୁ ପଚାରୁଲ ପେନ୍ଧିବାକୁ କନା ନାହିଁ ପେଟରେ ଦାନା ନାହିଁ, ବଦ୍ଧ ମୁଣ୍ଡରେ ଖଣ୍ଡେ ଗହଣା ନାହିଁ ଏଥିରେ ନାଚଲେ ସୁନ୍ଦର ହେବ । ଏ ପେବେ ଆଜ ମୁଁ

ଯା ମାଗିବ ତା ଦବ ତେବେବେ ମୁଁ ଯାଇଁ ନାଚ ଜୀବନରେ ବଞ୍ଚିବ ।

କେଳା—ମୋ ଗ ହୁନା ମା କସ ଗହଣା ନାଇବୁ ମାଟ୍‌ ।

କେଳୁଣୀ—ତେବେ ଶୁଣରେ କେଳା ।



ଗୀତ ।

( ମାଲୁଣୀ ବୋଲେ ବଚନ—ବୃତ୍ତେ )

ଶୁଣ ଅରେ କେଳା ଭୁହି, ଯେବେ ମୁଁ ଗୁଲିବ ଗହଣା ନାଇ । ଅରେ କେଳା । ଦେଖି ଝୁରୁଥିବେ ସାନଭାଇ ରେ ॥ ଜୁଡ଼ାକୁ ମଲ୍ଲି କା-କଡ଼ି, ବେଣୀ ମଥାମଣି ଅଣିବୁ ଗୋଡ଼ି । ଅରେ କେଳା । ତାର ପରେ କେତକୀ ପାଖଡ଼ା । ୨ । କାନକୁ ଦର୍ପଣୀ ନୋଳ, ତାର ପରେ ସାଜୁଥିବ ବାଉଳ । ଅରେ କେଳା । ଝୁମ୍ପା ଲାଗିଥିବ ଦୋଳ ଦୋଳ । ୩ । ନାହାରେ ମାଚଇ କାଉ, ନାକକୁ ଭୁ ଦେବୁ ପାରଶୀ ନୋଥ । ଅରେ କେଳା । ଦଣ୍ଡି ବେସର ତା ପାଖକୁ ତ । ୪ । ମୋ ଉଚ୍ଚ-ଉରଜ ପର, ଲମ୍ବିଥିବ ଚମ୍ପକଲିଆ ହାର । ଅରେ କେଳା । ହର ଶିରେ ନାଗ ପରକାର । ୫ । ଗଳାକୁ ମୋ ସେ ରଖିଆ, ହେବ ସେ ରସିକ ମନ ରସିଆ । ଅରେ କେଳା । କେହି ନୋହିବନ୍ତି ନରସିଆ । ୬ । ବାହାକୁ ବାଜୁବାଇଡ଼, ସାଜିବ ହାଲୁଇ ଗୁଲନ୍ତେ ହାତ । ଅରେ କେଳା । ମୁଣ୍ଡି ପଇଞ୍ଚ ତା ତଳକୁ ତ । ୭ । କଟିକି କମରପଟି, ଲାଗିଥିବ ଝୁମ୍ପା ଗୋଟିକି ଗୋଟି । ଅରେ କେଳା । ତା ମଝିରେ ଥିବ ଘୁଙ୍ଗୁରଘଣ୍ଟି ॥ କଲା ବେଳେ ନୃତ୍ୟଗୀତ, ଝୁଣୁ୨ ନାଦ ଯେ ହେବ ଚିତ୍ତ । ଅରେ କେଳା । ଦେଖି ରସିକେ ହେବେ ସୁମ୍ପ୍ରୀତ । ତା ତଳକୁ ଚନ୍ଦ୍ରହାର, ତହିଁ ଅଷି ପଡ଼ିଥିବ ଯାହାର । ଅରେ କେଳା । ପଦ ଚଳିବ ନାହିଁ ତାହାର । ୧୦ । ଘୁଙ୍ଗୁର ଲଗା ପାହୁଡ଼, ନାଦରେ ନାଗର ହେବ ସନ୍ତୁଡ଼ ଅରେ କେଳା । ଯତି ମନ ହୋଇଯିବ କୁଡ଼ । ୧୧ । ଏ ସବୁ ଗହଣା ଯେବେ,

ଅଙ୍ଗଦେଶରୁ ପାଶେ ଚହ୍ନବ ତେବେ । ଅରେ କେଲା । ବଗୁଳାଅ ବଇଷ୍ଣବ ଭାବେ । ୧୬ ।

କେଲା—ଓଗୋ କେଲୁଣୀ, ଯେବେ ଗହ୍ଦଣା ନ ଇବୁ ମନ କଲୁଣି ଯୋଉ ଦେଶରେ ଯୋଉ ଗହଣା ସାର ସେ ଗହ୍ଣା ଦେଇ ପାରେ ଅଣି ।

କେଲୁ—ଅରେ କେଲା, କୋଉ କୋଉ ଦେଶରେ କ କ ଗହଣା ଭଲ ଗଢ଼ନ୍ତ ମୋତେ କହିଲୁ, ମନକୁ ଗଲେ ସିନା ଧନ ଦେଇ କଣିବୁ !

କେଲା—ତେବେ ଶୁଣ ଲୋ କୁଚୁବଙ୍କିମା ।



( କୃଷ୍ଣ ପଡ଼ିଗଣ୍ଡ ଜାଲ ଅନ୍ତରେ—ବୃତ୍ତେ )

ଶୁଣ ଲୋ କେଲୁଣୀ ଗହଣା ସାର, ଜାଣି ନ ଥିବେ ଯା ସାର୍ ସଂସାର ॥ ଯେଉଁ ଦେଶେ ଯେଉଁ ଗହଣା ଭଲ, ଅଙ୍ଗଦେଶ ତୋତେ କହିଣ ମୂଲ । ନାଇକୁ ଫୁଲାଇ ଛିଡ ଲୋ । ମଚଟଲେ ମୋତେ ପଡ଼େ କଚୁଥିବୁ ବାହୁନଇ ଦନ ରାତ ଲୋ । ୧ । ଅଙ୍ଗଦେଶେ ଅଣ୍ଟାସୂତା ସୁନ୍ଦର, ବଙ୍ଗଦେଶେ ବାଜୁ ବାନ୍ଧୁଛି ସାର, କଳଙ୍ଗରେ କ କଙ୍କଣ ଶୋଭା, ବାଦର୍ଭରୁ ବଦ କିଣି ଅଣିମା ସେ । ପଞ୍ଚାଳ ଗଢ଼ା ପଇଞ୍ଚ ଯେ । ଭେଦୀ ଚମ୍ପାକଢ଼ ନାଇବୁ ସଜାଡ଼ ମାନନୀ ତୋ ମନେ ପାଞ୍ଚ ଗୋ । ୨ । ନଷେଧରେ ଶୋଭା ନାକର ଛବ, କର୍ଣ୍ଣାଟରୁ କା ଫୁଲ ଅଣିବ । ସଭ୍ରବଣ୍ଟେ ଯୋଗବିଆର ହାର, ଚୂଡ଼ଙ୍ଗରେ ଚନ୍ଦ୍ରହାର ମା ସୁନ୍ଦର ଯେ । ସିଂହଳରେ ଗୋଡ଼ ଖିଲ୍ଲି ଯେ । କରେଖନ୍ତ୍ର ଅଣ୍ଟି ଠକ ନ ପାରବ ଝଲସିବ ଯଭ ମତ ଯେ ।୩। ସିନ୍ଧୁଦେଶ ଭଲ ବାଙ୍କି ଖଡ଼ୁଅ, ସୁରାଟରେ ସିନ୍ଦୂରଚକ ବଢ଼ିଆ, ଗୁଜୁରାଟେ ମିଳେ ଗୁଞ୍ଜିଆପାଞ୍ଚି,

ମହାରାଷ୍ଟ୍ରେ ମିଳେ ସବୁ ମହାର୍ଠୀ ସେ ବୈଦୈଶ୍ୟେ ହଂସୁଲି ପୁଣି ।
ଅଣିଦେବ ନଷ୍ଟେ ଜାଣିଥା କେଳୁଣୀ ପାଣେ ବଇଷ୍ଣବ ଭଣି । ୪ ।



ସଭାଜନ—ଏଲୋ କେଳୁଣୀ, ତୋ କେଳା କହୁଛନ୍ତି ଏତେ ଦେଶରୁ ଗହଣା ସବୁ ବାନ୍ଧି ଆଣି ଦବ । ଅବକା ଖାଲି କନ୍ଥାରେ ଛକିଏ ନାଚଲୁ ଯେ ଧୂଡ଼ୁକି ବଜାଉ ।

କେଳୁ—ଏତେ ସାଥନ୍ତେ ଚାଳିଏ ଟଙ୍କା ଖଣ୍ଡିଏ ଶାଢ଼ୀ ଭଣ୍ଡାରରୁ ହୁକୁମ ହେଉ, ବଜା ରେ କେଳା ଧୂଡ଼ୁକି ।



ଉଦସ୍ୱର ଗୀତ ନାଚ ଓ ଧୂଡ଼ୁକି ବାଦନ ।

( ବାଙ୍କା ମା ନାଥରେ ଡାଥଲେ ଝୁମ୍ପ—ବୃତ୍ତେ )

କେଳୁ—ଧୂଡ଼ୁକି ବଜା ବଜା ବଜାରେ କେଳା ।

କେଳା—ଡଡ଼କା ଯାଉଛୁ କର୍ପା ନଡ଼ାକ ପାଉଛୁ ଖୋପା ଡେଙ୍ଗଇ ଖେଲା ଟେଡା ଡୋଲା । ପଦ ।

କେଳୁ—ଧୂଡ଼ୁକି ବଜା କୁଅଁ କୁଅଁ କୁଅଁ କୁଂ ।

କେଳା—ଫୁଲାଇ ଦେଇ ନାକପୁଡ଼ାକ ଥିର ଥିର ପାଦକୁ ଚଳା ॥

କେଳୁ—ହୁଡ଼ିଲୁ ତାଳ ରେ ରେ, ରେ, ରେ ।

କେଳା—ମୋଡ଼ୁଛୁ ମୁହଁ ମଝରେ କେତେ ଶଢ଼ୁନାହୁଁ ଜମାରୁ ଗଲା ॥

କେଳୁ—ଛୁଡ଼ାଇ ଦେଏ ଠଂ ଠଂ ଠଂ ଠଂ ।

କେଳା—ଯୋଡ଼ାଏ ମାଳ ଉଡ଼ାଇ ଦେଲି ଘଡ଼ିଦେଲୁ ବାହାରି ଗଲା ।

କେଳୁ—ପାରବ ନାହିଁ ଯା ଯା ଯା ଯା ।

କେଳା—ହାରଲୁ ଠୋକି ଜାଣିଲୁ ଦେଖି ବଇଥ ତୋ ଗଳାରମାଳା ॥



କେଳୁ—ଏତେ ପଧାନପୁଅ, ଏ କେଳା କହୁଛି ମୋତେ ନାଚରେ ହରାଇଲା ମୁଁ ତାକୁ ନାଚ ଧାଠରେ ହରେଇବି ।

କେଳା—ଏତେ ଜସ ପାଠ ପଢ଼ିଲୁ ପଢ଼ିରେ । ସାଆନ୍ତେ, ଯେବେ
କେଳ'କୁଳେ ଜନମ ପାଇଚ ମୁଁ କ ଛାଡ଼ିବ, ଆମର ଠାକୁର
ଜଣ ଆମକୁ ଦଣ୍ଡିବ ନାହିଁ । ଜସ ପଢ଼ିରେ କେଳୁଣୀ ।

କେଳୁ—ତେବେ ଶୁଣୁରେ କେଳା ।



( ବେଗେ ଯାଅ ଯାଅ ଲଙ୍କାପୁର—ବୃତ୍ତେ )

ଯାହା କହିବ ଦେବୁ ବୁଝାଇ ରେ, କେଳା ତୁହି । ତେବେ ମୁଁ
ଜାଣିଲି ଜିଣିଲୁ ତୁ ମୋତେ ନେବ ତୋ ମନ ମନ୍ତ୍ରାଇ ରେ । ପଦ ।
କିଏ ତୋର ମାତା କିଏ ସେ ତେ ପିତା କାହାର ନନ୍ଦନ ତୁହି ।
କେ ଦେଲା ଏ ନଳ କାଣ୍ଡି ଆ ସକଳ ପକ୍ଷୀମାରୁ କସପାଇଁ ରେ । ୧ ।
ବଜାଉଛୁ ଯାହା ଯେବଣ ଧ୍ବନି କି କେଉଁଠୁ ତା ଅଛୁ ପାଇ । ତାର କାଠି
ଗୋଟା କେତେ ଅଙ୍ଗୁଳି ସେ କେ ଦେଲା ତୋତେ ଶିଖାଇ ରେ । ୨ ।
କେ ଦେଲା ସେ ତାର, କହ ତା ଉତ୍ତର, ବୁଲୁ ଯେ ସିନ୍ଦୁର ନାଇ ।
ସେ ସିନ୍ଦୂର ଗାର କଡ଼ା ଗୋଟିକର ଗଢ଼ିଛୁ କସ ମିଶାଇ ରେ ॥ ଯେଉଁ
ଯେଉଁ ଝୁଲି ମାଗୁ ଭିକ ବୁଲି ଆଗେ ଥିଲା କାହାଠାଇଁ । ପାଇଲୁ
କେମନ୍ତେ ଠିକେ କହ ମୋତେ ଠକ ବାଇଷ୍ଟବ କହି ରେ ॥



କେଳା—ଏ ସାଆନ୍ତେ, ଏ କେଳୁଣୀ ଯାହା ପଚାରିଲା ମୁଁ କହୁଚ, ତୁ
ଟିକିଏ ସାକ୍ଷୀ ଥା । କହିବ ଯେବେ, ଜିତିବ ତେବେ ।

( ଗୀତ ପୋସ୍ତ )

ଶୁଣ ଶୁଣ ଆଗୋ ଯୁବାରତନ, ଯାହା ପଚାରିଲୁ ମୋ ଠାରୁ ଶୁଣ,
ସତ୍ୟଯୁଗେ ହର ଉଦ୍ୟାନ ବନ, ଭ୍ରମଣରେ ଗଲେ ତ୍ରୟମ୍ବଲୋଚନ,
ସଙ୍ଗତରେ ଗଲେ ମହାନ୍ତ ସୁତା; ହର ହରଷ ଦେଖୁଣ ବନତା,
ପ୍ରବେଶ ହେଲେ ସେ ବନ ମଧ୍ୟତ, ବସିଲେ ସେ ଏକ ବୃକ୍ଷ ତଳତ,
ଦେଖି ନିର୍ଜନ ସ୍ଥାନ । ୧ । ପାର୍ବତୀ କହନ୍ତି ପଞ୍ଚବଦନ, ମୋତେ

ଶୁଣା ଅଷ୍ଟାଦଶ ପୁରାଣ, ଘୋରନାନ ଏ ଯେ ନିର୍ମଳ ସ୍ନାନ, ଶୁଣନ୍ତେ ହୋଇବ ବହୁତ ପୁଣ୍ୟ; କହ ପାନ କଯାଣ । ୨ । ଏମନ୍ତ ଶୁଣିଣ ସେ ଶୂଳପାଣି, ଦୁର୍ବାସା ମୁନିଙ୍କ ଦେଲେ ବଖାଣି ନିଶ୍ଚଳେ ଶୁଣିଲେ ସେ ରୁଦ୍ରାଣୀ, ପୁରାଣ ଶେଷ ଯେ ହୋଇଲା-ପୁଣି, ଏକାଳେ ବୃକ୍ଷ ଅଗ୍ର । ୩ । ବସିଣ ଥିଲା ଯେ ଉଲୁକ ଖଗ, ଶିର ହରାଇଲା ଶିବଙ୍କ ଆଗ, ଦେଖିଣ ଶିବ ଯେ ହୋଇଲେ ରାଗ, ବଗ୍ରତନ୍ତ୍ର ହଏ ମରିବ ବେଗ, ଏମନ୍ତେ ଗଙ୍ଗାଧର । ଘୋଷ୍ଟ ଆଣିଲେ ଯେ ହୃଦ ତାଙ୍କର, ତହୁଁ ପୁତ୍ରଷେକ ଦେଲେ ବାହାର, ଈଶର ବୋଇଲେ ପକ୍ଷିଙ୍କ ମାର, ଏହା ଶୁଣି ପୁରୁଷ । ୪ । ବୋଇଲା କପଟ କରିବ ନାଶ. ଶୁଣି ଶେଗ୍ରଶ, ସୁମରିଲେ ତହୁଁ ସାବତ୍ରୀଈଶ । ତନ୍ତ୍ରେ କର୍ମିଲା ବ୍ରହ୍ମା ଆସନ, ତତ୍ପରେ ଅଇଲେ ଉଦ୍ୟାନ ବନ, ଦେଖିଣ ଶିବଙ୍କୁ ସେ ପଦ୍ମାସନ, ବୋଇଲେ ହଷ୍ଟାଇ କଲ ସ୍ମରଣ, ଶୁଣିଣ ହସ୍ତଚେନ୍ଦ । ୫ । ବୋଲନ୍ତି ଏହୁ ଯେ ଅମୃତ ସ୍ୱନ, ହଅ ଦେ ଷଣ୍ଡ, ମୁଁଖିବ ଏ ଯଇ ପକ୍ଷୀ ଭୁଗତ, ବୋଲନ୍ତି ହର ଏ ଅମୃ ନନ୍ଦନ, ଏହାଙ୍କୁ ହଅ ଏ ସବୁ ପ୍ରମାଣ, ଏହା ଶୁଣି ବିଧାତ, କୁଣ୍ଡରୁ ବାଉଁଶେ କଲେକ ଜାତ, ତର ଛଅ ପବ କଲେକ ଧନୁ, ତାର ଅଗ୍ର ପବ ମୋହନବେଣ୍, ତାର ସପ୍ତକଣ ଥିଲେକ ସନ୍ଧି, ମନେକର ମୋତେ ଦେଲେ ବନ୍ଦି, କହି ବୋଇଲେ ରେ ଉଲୁକେ ନାଶ, ତୋଠାରେ ସନ୍ତୋଷ ଯେ କୃତ୍ତିବାସ, ଏହା କହିଲେ ବ୍ରହ୍ମା ॥ ଶୁଣିଣ ଉମା, ଦିଗମ୍ବର ଧରିଥିଲେ ଯେ ଶର, ତାହା ନେଇ ଦେଲେ ନଳ ଉପର, ବୋଇଲେ ତାହାର ନ ବଧି ପ୍ରାଣ ବଚନେ ତାହାକୁ ଧରି ଭୁ ଆଣ, ଏହା କହନ୍ତେ ଜୟା, ନଳରୁ ପଦ୍ନେକ କଲେ କଣ୍ଡିଆ, ଅଠା ଦେଇ ଅତପ କଲେ ନର୍ମିଣ, ତାହା ନେଇ ଦେଲେ ମୋର କଟେଣ, ମୋତେ ଅଣି ଦେଲେ ଯେ ଶାକମ୍ଭରୀ, ପେଟକ ଗୋଷ୍ଟ ମୁଁ ଅଣିଲ ଧନ୍ଦ ତଙ୍କ ପଣେ ଦେଇ ମୁହିଁ, ଅମ୍ବିକା ସାଙ୍ଗେ, ତାହାର ଭ୍ରମଣ କରିଲୁ ଧନ୍ଦ, କଣ୍ଠରେ ଖୁଲେଣ ଦେଲେ ଦ୍ୱିଗର କର, ବୋଇଲେ ଭୁ ତରୁ ବଳରେ ଥିବୁ, ରାଜ ହୋଇଲେ ଭ୍ରମଣ କରିବୁ, ଛାଡ଼ି ଦେଲେ ଗଲା ବୃଷଭୂପର

ସ୍ୱର୍ଗପୁରେ ଗଲେ ସେ ବେଦବର, ଅମ୍ଭେ ଜନନୀ ତାଙ୍କ ଥିଲୁଁ; କପଳାସକଟେ ଯାଇ ରହିଲୁଁ, ଶୁଣ କଡ଼ା ବିଧାନ ॥ ଯେଉଁ କଡ଼ା ହେଲା ନିର୍ମାଣ, ଅନାଦି ଦାସ ନାମେଣ କମାର, ତାହାର ଘର ଯେ ଅନେକ ଦୂର, କୁବେର ତା ହସ୍ତେ କଡ଼ା ଗଢ଼ିଲେ, ଅଷ୍ଟଧାତୁ ନେଇ ତହିଁ ବସିଲେ, ଯତ୍ନେ ଧନପତି ଆଣି ତାହାକୁ, ସମର୍ପିଲେ ନେଇ ଯୋଗମାୟାଙ୍କୁ, ଯତ୍ନେ ରଖିଥିଲେ ସେ ମନ୍ଦ ମାଣ୍ଡି, ମୋର ହସ୍ତେ ତାକୁ ଦେଲେ ପଞ୍ଚାଇ, ଏତେ ବେଳ ଦୁର୍ଗା ସୁନ୍ଦର ଗୀର; କାଟି ଦେଇ-ଥିଲେ ମୋ ଶିରପଟ; ପଦ ଷଡ ମନ୍ତ୍ର ମେଳେ ସେ ଦେଲେ, ଏହି ବନରେ ଭୁଆଥ ବେଢ଼ିଲେ, ଚଳୁ କେତେକ କାଳ ॥ ଏକ ଦିନ-କରେ ବ୍ରହ୍ମ ଦୁଷ୍ଟାଳ, ଆପଣ ଥିଲେ ଯେ କୈଳାସପୁର, ବୀଣା ବଜା-ଇଲେ ହର ସମ୍ମୁଖେ, ତାହା ଦେଖି ମୁହିଁ ଅନନ୍ଦ ହେଲି, ବୀଣାବାଦନେ ମୁଁ ମନ ଦେଇ କଲି; ତାହା ଜାଣି ଯେ ସେ ବ୍ରହ୍ମସୁତ, ମୋର ତାଙ୍କ-ଠାରେ ଦେଖି ଭକତି, ହେଲେ ତାଙ୍କ ପ୍ରସନ୍ନ ॥ ସେତ ମୋ ଧନ ବୀଣା ଭୂମିରୁ ବୋହି ଏ ଆଣିଲେ, ତାର ତାର ନେଇ ତହିଁ ଭିଡ଼ିଲେ । ବୀଣା କଣ୍ଠ ଅଟେ ଅଷ୍ଟଧାତୁର, ତାକୁ ତାର ଭୁଲେ କଲେ ବାନ୍ଧୁଣି; ତାହା ନାମ ଦେଲେ ନାରଦୁଅଙ୍କ, ବୋଇଲେ ବଜାଥି କାଖରେ ଜାକି ନାରଦ ଦେଲେ ମେଳେ ॥ ରହିଲି ମୁଁ ତହିଁ ସେ ଦିନାକେତେ । ଦିନେ କାର୍ତ୍ତିକଙ୍କ ମୟୂର ପକ୍ଷା, କଲି ଅବରେ ମୁଁ ବନେଇ ବାନ୍ଧି ତାହା ଜାଣିଣ ଯେ ଶିବଙ୍କ ସୁତ । ମୋହଠାରେ କୋପ କଲେ ବହୁତ ସେଠାରୁ ମୋତେ କଲେକ ବାହାର, ପ୍ରବେଶିଲି ଗଣେଶଙ୍କ ଛାମୁରେ । ଜଣାଇଲି ସମସ୍ତ ॥ ଶୁଣିଲେ ଯହୁଁ ଅମ୍ବିକାସୁତ । ବୋଇଲେ ସେତ । କୋପ ହେବେ ତୋତେ କଲେ କାର୍ତ୍ତିକ । ତୋତେ ରଖିବାକୁ କାର ସାମର୍ଥ୍ୟ । ମୋହଠାରୁ ଏହି ଝୁଲିକି ନିଅ, ଭିକ୍ଷା ମାଗି ରାଜ୍ୟେ ବୁଲିଣ ଖାଅ; ଯାଅ ଏଥୁଁ ପଳାଇ ॥ ଶୁଣିଣ ମୁଁ ରାଜ୍ୟ ରାଜ୍ୟେଣ ବୁଲି । ପେଟ ପୋଷିଲି, କେଳ ବୃତ୍ତି ତେବେ ବୁଝିଲି ଦେଲି; ହେଲା କି ନୋହିଲା ମନରେ ବୁଝି । ମୁହିଁ ତୋ ସ୍ୱାମୀ ନା ବାରେକ ହେଜ । ହ୍ୱାସଇ ବଇକ୍ତବ । ୧୬ ।

କେଳା—ଏବେତ ଦେଖ ମଧାନେ । କେଲୁଣୀ ହାରନ୍ତୁ ନା ମୁଁ ହାରନ୍ତୁ ସବୁ କହ ସାଆନ୍ତେ ।

ସଭାଜନ—କେଲୁଣୀ ହାରନ୍ତି ମିଛ କହିବା କଥଁ ।

କେଲୁ—ଏହ ପଧାନ ସାଆନ୍ତ । ଏଥେରେ ଯିଏ ମୁଁ ହାରଲି, ସେ ଯାଇ ସାନରେ ଭଳ ମାରିବ । ମୁଁ ଯାଉଛୁ ଚଡ଼ା ଲୁଟେଇବ କିଏ କେତେ ପଇସା ଆଣିବ ସାଆନ୍ତେ ତୁ ଫେରେ ଦେଖିବୁ ।

ସର୍ଦ୍ଦା—ଆଗରେ କେଳା, ତୁ ଯା ଭଳ ମାରିବୁ, ସେ ଯଉ ଚଡ଼ା ଲୁଟାଇବ, ଯେ ବେଶୀ ଆଣିବ ସେଇ ଜିତିବ ।

କେଳା—ହଉ ତେବେ ସାଆନ୍ତେ ମୁଁ ଗଲିଲି (ପ୍ରସ୍ଥାନ)

କେଲୁଣୀ—ହଉ ତେବେ ସାଆନ୍ତେ ମୁଁ ଗଲିଲି ।



## କେଲୁଣୀର ଗୀତ ଗାଇ ପ୍ରବେଶ ।

( ଧୀରେ ଧୀରେ ରାଧା ବ୍ରଜେଶ୍ୱରୀ—ବୃତ୍ତେ )

ଆସ ଲୋ ନାଗରୀଗଣେ ଆସ, ଚଡ଼ା ଲୁଟାଇବ ପାଶେ ବସ । ଯୋଡଶର ଫୁଲ ଶିରରେ ଲେଖିବ ଗଣ୍ଡେ ତାରାପତି ରେଖାଏ । ଓଷ୍ଠେ ମଧୁମାଛି, କର୍ଣ୍ଣେ ଫଳେ ଲେଖିଥିବ ସଖି । ୧ । ହୃଦେ ରାଜାରାଣୀ ଦେବ ଲେଖି, ଭାତ ଦେଲାବେଳେ ଅଗୋ ସଖି, କାନ୍ତ ଦେଖି ଚିତ୍ତ ଉଲ୍ଲାସ ହୋଇବ ବଲେ ଗଣ୍ଡେ ଚୁମ୍ବ ଦେବେ ଝିଙ୍କି । ଦଣ୍ଡେ ତୋଇ ସ୍ଥିର । ଗୃହିଁବେ ନଟବର ରମାବର । ୨ । ବାହାରେ ଲେଖିବ ଶୁଆ ଶାରୀ, ଗଛେ ବସିଥିବ ଧାଡ଼ି ଧାଡ଼ି । ଲେମ୍ବୁ ଲେମ୍ବୁ ଫଳ ପାଚି ଝଡ଼ିଥିବ ପକ୍ଷୀଗଣେ ଚରୁଥିବେ ଘେରି । ଗଣିଦଅ ଟଙ୍କା । ଛଡ଼ାଇବ ତେବେ ମନବଙ୍କା । ୩ । ପାଦରେ ଲେଖିବ ପଦ୍ମଫୁଲ ଅଧରେ ନାଟରେ କଳା ମୂଳ । ଯୋଗୀ ଯିବେ ବଲେ ବଇଷ୍ଣବ ଭୁଲେ ମୋହିବେ କେହି ତା ସମତୁଲ । ଆସ ରାମାମଣି । ଚଡ଼ା ଲୁଟିଦେବ ମନଜାଣି । ୪ । (ପ୍ରସ୍ଥାନ)



( କେଳାର ପ୍ରବେଶ । )

ସଭ୍ୟ— ଅରେ କେଳା, ତୋ କେଲୁଣୀ କାହିଁ ଗୁଡ଼ ଏକା ।

ଗୀତ ।

( ଚନ୍ଦ୍ରରତନ ଧନ ତୋ ବାଙ୍କ ଗୃହାଣି—ରଚନ୍ତେ । )

ଭାଗ ଦେଖିବ କେବେ, ଗଜା ମାଳକ ମୋ ବାଟରେ । ଗନ୍ଧ ଚନ୍ଦ୍ର ଭୁଷ୍ଟ ମୋ ସଂଗେ ଏକାଠି ବଣା ହେଲ ବେଣାପାଟରେ । ପଦ । କେତେ ଲୋକଙ୍କ ପତ୍ରର ପତ୍ରର ଅହିଲିଣି ଘାଟ ବାଟରେ । ଅନାଉଛୁ ଯେତେଣେ ,ଦଶୁଅଛୁ ତେତେଣେ ମୋ କେଲୁଣୀ ଚକପଟରେ । ୧ । ଉପାଳସା ପାଇଁ ନିଦ୍ରଯାଏ କଂସା ବନା ନ ପଶଇ ପେଟରେ । ତାଙ୍କ ଡକ ଥରକଲ ମୁଁ ଏଣିକ ଚଣ୍ଡେ ଶୁଖିଯାଏ ବାଟରେ । ୨ । ପୀନଭୁରେ ନିନଶାଢ଼ୀ ଘଡ଼ୁଥିଲେ ତନ ଢରେ ମନ ଅଣ୍ଟରେ । ସେ ସୁନ୍ଦର ଠାଣି ଟେନରଛ ଗୃହାଣି ଚଇଲାଇ ଦେବ କାଠରେ । ୩ । ଢର ମନେ ମାନ ମୋ ଗ୍ରାମ ନଟନ ପାଞ୍ଚଥିବ ଜସ କଣ୍ଠରେ । ଭାଷେ ବନମ୍ଭବ ଭାଷ ତାର ଭାବ ପ୍ରାଣ ନ ରହିବ ଘଟରେ ॥

ସଭ୍ୟ—ଅରେ କେଳା, ତୋ କେଲୁଣୀ ଅସିଲେ ଚହ୍ନିବୁ, ତୁ ସୁନା ମା ବୋଲି ଡକେ ସେ ଆସିବ, ସେ ତତେ ଯେତେ ଖୋଜୁଛି ତତେ ତାକ ତାକ ଏହି ସାଇଅଟେ ଯାଉଛି, ତୁ ତାକୁ ଖଡ଼ କୁଅଟେ ଗ୍ରାମଗଳ ସେ ବୁଝିଛି ।

କେଳା—ଏତ ସ ଅନ୍ତୁ, ଯେବେ ତେଣାଇ ଦେବୁ କଥା ମୃତପଦ ମିଠା କର କହିଲେ ପିଠିରେ ବଡ଼ ଅଉଁସି ଦେଲେ ପଣି ହୋଇଯିବ । ଯଉ ପାଖରେ ନାଥ ଝାଣ କରିବ । ଓ ତୋ ସୁନା ମା ଅଇଲୁ ଓଏ ସୁନା ମା ସୁନା ମା ହୁରୁଭଙ୍ଗ ମାଏ ଯାଏଁ ଆ ।

—:o:—

( କେଲୁଣୀ ଗୀତ—ଦେଖି ବଂଶୀ କାଳ—ବୃତ୍ରେ । )

ମୋର କେଳା ଭୁଣ୍ଡ ପରି ଶୁଦ୍ଧଲା ଏଣେ,

କଏ ତାକୁଛି କେଉଁଣେ । ପଦ ।

ଦେଉକର କଣ୍ଠ ଗନ୍ଧ ଗୃହି ଖଣ୍ଡ ରେଟ ନ ହେଲୁ ଝଣେ ॥

ମାଗୁଥିବ ଭକ୍ତ ବୃନ୍ଦଣ ମୂଲକ ଥିବିଲା ନାହିଁ ସେ କେଉଁ କାରଣେ ॥ ବସାଇ ରଥରେ ଆପଣା କଥରେ ପ୍ରୀତିରେ ମତ୍ତ କଣେ । ଆଜ୍ଞା ତ ହେମନ୍ତେ ପାଶେ ର ଚାହିଛୁ ଭଗାର ଦେବନ୍ଦ୍ର ନାଗସ୍ତ୍ର ଜଣେ । ୬ । କ ବୃଦ୍ଧ ନୃଡ଼ଲ କାହିଁରେ ପଡ଼ଲ ଲଡ଼ିଲା କେଉଁ ଗୁଣେ । କ ଅବା ସେ ଯୋଗେ ରୂପ ନ ଅଧିଲା ଧାର ହୁଏ ମନ ପଞ୍ଚମବାଣେ । ୭ । ସତେ ସଦାଶିବ ମୋ ଦୁଃଖ ନାଶିବ ଅନାଇ କେଜ କୋଣେ । ଭଣେ ବଇଷ୍ଣବ ସେ ମୋ ଇଷ୍ଟଦେବ ସେବୁଥିବ ସଦା ସେହି ଚରଣେ ॥



ସଭା—ଓଲୋ କେଳୁଣୀ, ସୁନା ବାପାଙ୍କୁ ତୁ କଣ ପାଇନ ହୁଁ ।

କେଳୁଣୀ—ଏତେ ସ ଆଜ୍ଞେ, ମେ କେଳା ଭୁଣ୍ଡ ପଚ କଣ ଏଆଡ଼େ ଶୁଝଲା । ମୁଁ ଦାଣ୍ଡେ ଦାଣ୍ଡେ ଦଉଡ଼ୁଛୁ ।

ସଭା—ଅଲୋ କେଳୁଣୀ, ଦାଣ୍ଡେ ଦାଣ୍ଡେ ନ ଯାଇ ଦଣ୍ଡା ଦଣ୍ଡା ଯାଅ ।

କେଳୁଣୀ—ଓ ଏ ସୁନା ବାପ, ଥଇଲୁ ଓଏ ଥଇଲୁ ।

କେଳା—ଥଇଲୁ ଏ ଭୁରୁଭଙ୍ଗୀ ମ , ଓଏ ।

ସଭା—ଓଲୋ କେଳୁଣୀ, ତୋ କେଳାକୁ ପାଇଲୁ ଦେଇ ଧ ଧ ଧ (ଧର)

କେଳା—ସ ଆଜ୍ଞେ, କଥା କହୁନାହିଁ କାହିଁକ । ଭୁ ଧ ଧ କହିଲୁ ସେ ତ ଧରନ୍ତା ।

ସଭା—ଓରେ କେଳା, ଯେ ତତେ ନ ପଇ ତତେ ମାନ କର ରୁଷିଛୁ ।

କେଳା—ସାଆଜ୍ଞେ, ଏହିକ୍ଷଣି ତାର ରୁଷା ଚଖି ଦେବ ନାହିଁ ।

( ଗୀତ )

ସାଜୁଡ ନାହିଁ ରାଜୀବନେତ୍ରୀ ଆଜ ଏ ତୋର ରୁଷିବେ ।
ମ ଜ୍ଜିବ ତୋର କରନ୍ ରାଜ ସାଜିବ ଗୃରୁ ବେଶ ଷା ରେ । ପଦ ।
ଭଜିବ ତୋର ନାମ ବାଲା, କାଞ୍ଚନଗାତ୍ରୀ କର ମାଳା । ଖଞ୍ଜିବ ପାଦେ

ପାନ୍ଥୁଡ଼ି ବଳା ପଳାଉ ଦୁର୍ଦ୍ଦଶା ରେ । ଲୁଣ୍ଠକେଶ କରବ ଖୋଷା, ଲୁଣ୍ଠ ପିନ୍ଧାଇବ ବସନ ଯୋଷା, ଗୂଢବ ଖୋଟେ ମୃଗଦୃଶା କରବୁ ପ୍ରଶଂସା ରେ । ୨ । କାଳକ ବନ୍ଧୁ ପାଳକ ପର, ବାଳକ ଅଶାଦେଇ ଗୋସ୍ୱା, ନ ଟାଳ ବଇଷ୍ଣବ ଗୁହାର ଉଡିଯିବ ହଂସା ରେ । ୩ ।



( ଚନ୍ଦ୍ର ବଦନା ରେ ଜଣାଉଛି—ବୃତ୍ତେ )

ଜୀବଜୀବନ ହେ ଭୃଙ୍ଗକର ପଛକଥା ।

ମୁଁ ହେଲ ଭ୍ରମର ତୁମ୍ଭେ ହେଲ ମୋର ଘଟ ଲଟ୍ଟି ବଥାତା । ପଦ ।
ପଚେ ପଚେ ଦେଇ ପଟେଟ କପ୍ରେ ମାର ଛାରର ଝମଡ଼ା ।
ଯେ ଯାହାର ସେ ତାହାର ଗଲାହାର ଜନ୍ମାଏ ମାଯ୍ୟା ମମତା । ୨ ।
ଭୂଲୀତଳପଟେ ଶୃଙ୍ଗଳପରେ ହକଂଇଣ ଦେଇ ଚେତା । ମଜାଇ
ପ୍ରେମ ସେ କମଣ୍ଡଳରେ ପିତାତ ଲାଗଇ ସତା । ୨ । ଦଶମାସେ ଗ୍ରାମ
ହରାଇ ଯେସନେ ଲଭି ଜନକସୁତା । ତେସନେକ ଦଶା ଉପାଟେ
ଅମ୍ବର ବାଇଅ ଉଟେ କବତା ।

( ସମାପ୍ତ )



କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା ମେସିନ୍‌ଯନ୍ତ୍ରେ
ମୁଦ୍ରିତ । ୧୯୩୧

# ବିଜ୍ଞାପନ

ନିମ୍ନ ଲିଖିତ ପୁସ୍ତକମାନ କଟକ ଜଗନ୍ନାଥକମ୍ପାନୀରେ ବିକ୍ରୟାର୍ଥେ ଗଚ୍ଛିତ ଅଛି । ଅଗ୍ରୀମ ପଠାଇ ପୁସ୍ତକ ମଗାଇଲେ ଅଧିକ କମିଶନ ଦେଇଥାଉଁ ।

| | | | |
|---|---|---|---|
| ସ୍ତବରତ୍ନାକର | ଟ ° ୫ | ବିଲଙ୍କାରାମାୟଣ | ଟ ° ୫୵ |
| ଲକ୍ଷ୍ମୀପୁରାଣ | ଟ ° ୵ | ଗଜନିସ୍ତାରଣ | ଟ ° ୧୬ |
| ଅଙ୍ଗଦପଦ | ଟ ° ୵ | ହରିକେଶବବୋଲି | ଟ ° ୧୯ |
| ଅଶ୍ୱମେଧଯଜ୍ଞ | ଟ ° ୵ | ଅମରକୋଷ ଗୀତା | ଟ ° ୵ |
| ଅଲଙ୍କାରବୋଧ | ଟ / | ଅଲେଖଭଜନ | ଟ ° । |
| ଭୂତକେଳି | ଟ ° ୵ | ପାଲା ବନ୍ଦନା | ଟ ° /୬ |
| ଲାବଣ୍ୟନିଧି | ଟ ° / | ଯମପୁରାଣ | ଟ ° । |
| ଲକ୍ଷ୍ମଣଶକ୍ତିଭେଦ | ଟ ° ୧ ୬ | ଦଶପଟଳମାଳିକା | ଟ ° । |
| ଝିକାଥମେଳା | ଟ ° / | ଭଗବତଗୀତା (କୃଷ୍ଣସିଂହ) | ଟ ° । |
| ନବାଅଙ୍କାର୍ତ୍ତିନ ୧ସେଟ୍ | ଟ ° ୫ | ସାମୁଦ୍ରିକ | ଟ ° ୵ |
| ଚଉପଦୀରତ୍ନମାଳା ୧ମ | ଟ ° /୬ | ଭାଗବତ ୧ସେଟ | ଟ ୫୧ |
| " ୨ୟ | ଟ ° ୵ | ଗଙ୍ଗାମାହାତ୍ମ୍ୟ | ଟ ° ।/ |
| ଶୋକକୁଞ୍ଜ ଚଉପଦୀ | ଟ ° ୵୬ | ସୁଧାସାରଗୀତା | ଟ ° ୫ |
| ପ୍ରଭାତଅବକାଶ | ଟ ° / | ଗଣେଶବିଭୂତି | ଟ ° । |
| ରାଧାକୃଷ୍ଣ ମିଳନ | ଟ ° / | କାର୍ତ୍ତିକମାହାତ୍ମ୍ୟ | ଟ ° ୫ |
| ରାଧାକୃଷ୍ଣ ଦାୟିକା | ଟ ° ୧୯ | ବୈଶାଖମାହାତ୍ମ୍ୟ | ଟ ° ।୵ |
| ବୃହତ ନାମରତ୍ନଗୀତା | ଟ ୧୧ | ମାଘମାହାତ୍ମ୍ୟ | ଟ ° ୫ |
| ଲାବଣ୍ୟବତୀ | ଟ ୧। | ରସବିନୋଦ | ଟ ୧୧ |
| ବଦଗ୍ରହଚନ୍ଦ୍ରାମଣି | ଟ ୬୧ | ସଭାବିନୋଦ | ଟ ୧୧ |
| ନୃସିଂହପୁରାଣ ୧ସେଟ୍ | ଟ ୭୧ | | |

ସିଦ୍ଧ ମନ୍ତ୍ର ଯନ୍ତ୍ର ମାଳା ପ୍ରଥମ ଟ ° ୵ ଏବଂ ଦ୍ୱିତୀୟ ଟ ° ୵

ପ୍ରାପ୍ତିସ୍ଥାନ—

ଜଗନ୍ନାଥକମ୍ପାନୀ
ନିମଚଉଡ଼ି, କଟକ । } ଶ୍ରୀ ଜଗନ୍ନାଥ ସିଂହ
ପ୍ରୋପ୍ରାଇଟର